# ମୋ ଦେଶ
# ନୁହେଁ ଭୁବନେଶ୍ୱର

" ମୋର ଆଜି କିଛୁ ନାହିଁ, ଅଛି କେବଳ ସ୍ୱରଟିଏ,
ଜଡ଼ିତ ହୋଇ ରହିଥିବା ମିଥ୍ୟାକୁ ଖୋଲି ଦେବା ପାଇଁ "

ଡବ୍ଲ୍ୟୁ. ଏଚ୍. ଅଡେନ୍

" ଦେଶ କିମ୍ବା ମଣିଷଙ୍କୁ ବଞ୍ଚାଇବା ପାଇଁ -
କବିତା ଯା'ର ନାହିଁ, ତା'କୁ କ'ଣ କବିତା କହିବା ? "

- ଚେଟସାସ୍ଲାଭ୍ ମିଲଷ୍

( ନୋବେଲ୍ ପୁରସ୍କାର - ୧୯୮୦ )

ଅଧ୍ୟାପକ ଭଗବତ୍ ପ୍ରସାଦ ରଥ

# ମୋ ଦେଶ ନୁହେଁ ଭୁବନେଶ୍ୱର

ଉତ୍କଳ ଦିବସ

୧୯୮୪

ଅଧ୍ୟାପକ ଭଗବତ୍ ପ୍ରସାଦ ରଥ

# ମୋ ଦେଶ ନୁହେଁ ଭୁବନେଶ୍ୱର

ଲେଖିଛନ୍ତି :

ଅଧ୍ୟାପକ ଭଗବତ୍ ପ୍ରସାଦ ରଥ

ପ୍ରକାଶ କରିଛନ୍ତି :

**ଶ୍ରୀମତୀ ସତ୍ୟଭାମା ରଥ**

ଶାସ୍ତ୍ରୀ ନଗର, ରାୟଗଡ଼

ଜି: କୋରାପୁଟ

ଛାପିଛନ୍ତି :

ଜନତା ପ୍ରେସ୍

ରାୟଗଡ଼ ( କୋରାପୁଟ )

ମୂଲ୍ୟ- **ଦୁଇଟଙ୍କା** ମାତ୍ର

# ମୁଖଶାଳା

=*=

ଓଡ଼ିଶାର ମାନଚିତ୍ରରେ ଦୁଇଟି ଦେଶ ଭୁବନେଶ୍ୱର ଓ କୋରାପୁଟ ।
ଭୁବନେଶ୍ୱର ପ୍ରଦର୍ଶିତ ଐଶ୍ୱର୍ଯ୍ୟରେ ଝଲମଲ , କୋରାପୁଟ
ମୌନ ଦାରିଦ୍ର୍ୟରେ କଲବଲ । ସିନ୍ଦବାଦ୍‌ର ବୃଦ୍ଧାଘୋଷା
ବୃଦ୍ଧ ଭଳି ଭୁବନେଶ୍ୱର କୋରାପୁଟର ସ୍କନ୍ଧାରୂଢ଼ା !
ଭୌଗୋଳିକ ଭୁବନେଶ୍ୱରର ନାଭି କେନ୍ଦ୍ରରେ
ଶ୍ରମିକ ଓ ଭିକ୍ଷୁକର କୋରାପୁଟ ଧ୍ୟାନରତ ,
ଦୈନ୍ୟ ଓ ଅସହାୟତାର ଜୀବନ୍ତ ସାକ୍ଷୀ ।
ଭୌଗୋଳିକ କୋରାପୁଟରେ ବଣିକ ଓ
ନେତାର ଭୁବନେଶ୍ୱର ୯ ଟ କି ଚ
ଔଦ୍ଧତ୍ୟ ଓ ଅହମିକାର ବିଶାଳ
ଛତ୍ର । ହ୍ୟାମଲେଟର ଡେନ୍‌ମାର୍କ
ଭଳି ଭୁବନେଶ୍ୱର ହତ୍ୟାକାରୀ ରଜା
ଓ ବ୍ୟଭିଚାରିଣୀ ରାଣୀଙ୍କ ଦେଶ । ମାର୍କ୍‌ସଙ୍କ
ୟୁରୋପ ଭଳି ଭୁବନେଶ୍ୱରର ନାଭି କେନ୍ଦ୍ରରେ
ଉଦ୍‌ଭଟତାର ଅଖଣ୍ଡ ରାଜତ୍ୱ । ଭୁବନେଶ୍ୱର
ବକ୍ଷରେ ବିଦ୍ରୋହ ଅନିବାର୍ଯ୍ୟ ଓ ବାଞ୍ଛନୀୟ ।

=*=

# ଦ୍ୱାରଲେଖ — ୨

=*=

ଅନ୍ୟ ଅକ୍ଷାଂଶ, ଅନ୍ୟ ଦ୍ରାଘିମାରେ,
ଏଠାର ନଦୀ, ପାହାଡ଼ ମାନଙ୍କ ପରିଚୟ,
ଏ ଅଞ୍ଚଳର ବଣ ମୂଲକରେ ମଣିଷ ବାଘଙ୍କର ଉପସ୍ଥିତ
ଅଜଣା, ଅଶୁଣା ।

ଦରବାରର ମର୍ମର ଆଲୁଅଠୁ ବହୁତ ଦୂରରେ
ଅନ୍ଧାର ଧର୍ଷିତ ମୁଲକରେ,
ମୋ କଲମ ଯେଉଁ ଅସ୍ପଷ୍ଟ ରେଖା ମାନ ଟାଣୁଛି
ମଣିଷ ଲୁହର ଶିହରଣରେ ଚଞ୍ଚଳ ହୋଇ,
ତାହା ହିଁ ମୋର କବିତା ।

—:o:—

# ଦ୍ୱାରଲେଖ – ୨

=*=

ତମେ ଯେଉଁମାନେ ବଣ ଦେଖିନ ନା ପାହାଡ଼ ଦେଖିନ
ଜନ୍ମ ପାହାଡ଼ର ହୃଦୟର ଝିଲ୍ ଝିଲ୍ ସ୍ୱର ଶୁଣିନ
ଜାଣି ପାରୁନ କେମିତ
ସହରର ବଷାକ୍ତ ଚୁମା ଖାଇ ଖାଇ
ଏଠି ବଣର ସବୁଜ ତରୁଣୀ ଝାଉଁଳି ଯାଏ ।

ଗଜନୀଠର ବଷାକ୍ତ ବାଷ୍ପରେ ଫୁଲି ଫୁଲି
ଶୋଷଣର ବେଲୁନ୍ ଉପରକୁ ଉପରକୁ ଉଠେ,
ଉଚ୍ଛୁଳା ଯୌବନ ଦେହରେ ଅନୁରାଗର ସିନ୍ଥେଟ୍ ଆଙ୍କି,
ସୌଦାଗରର ମଙ୍ଗଳ ଆକାଶ ଛୁଏଁ ।

—*—

ମଫସଲର ଡାକବଙ୍ଗଳା ଏକ ଆଲୋକ ଚର୍ଚ୍ଚିତ ସ୍ୱପ୍ନରେ
ଦେଖିଥିଲି ଗୋଟିଏ ଚନ୍ଦ୍ର ଦୋହଲି ଦୃଶ୍ୟ ।
ତନୁରେ କୋଡ଼ିଏ ବସନ୍ତର ସ୍ୱାକ୍ଷର
କୋଉଠୁ ଆସିଲ ଗ୍ୱକସ୍ଥା ପ୍ରାର୍ଥିନୀ ବାଳା ?
ବାଲେଶ୍ୱର ? କଟକ ? ନା ଶ୍ରୀକ୍ଷେତ୍ର ?

ଡାକବଙ୍ଗଳାର ନରମ ଗଦି ଉପରେ
ପ୍ରୌଢ ମନ୍ତ୍ରୀ ତମକୁ ବିବର୍ଣ୍ଣ କଲ ?

କିଏ ଚାହିଁ ରହିଚି ତମର ପଥ ...
ଶଯ୍ୟାଗତ ପିତା ନା ପକ୍ଷାଘାତ ଗ୍ରସ୍ତ ମାତା ?

ପୋର୍ଟିକୋରେ ଜିପ୍ ଠିଆ ହେଲାଣି,
ତାରାମାନେ ଆକାଶରୁ ବିଦାୟ ମାଗିଲେଣି
ଅସଜଡ଼ା କେଶବାସ ସଜାଡ଼ି ନିଅ,
ନୈଶ ଅତ୍ୟାଚାରର ଚିହ୍ନ ଲିଭାଇ ଦିଅ,
ସହରର ମାନ୍ୟ ଗଣ୍ୟ ଲୋକେ
ପ୍ରସାଦ ପାଇଁ ଟିକେଟ କାଟି
ଏଥର ପ୍ରେକ୍ଷାଳୟକୁ ଆସିଯିବେ ।

—※—

ନେହେରୁଙ୍କ ଭଳି ଅସ୍ପୃଷ୍ଟ ବଂଶଧରଙ୍କ କାର୍ଯ୍ୟକ୍ରମ ସମ୍ପର୍କରେ ମୁଖ୍ୟମନ୍ତ୍ରୀଙ୍କ ଭାଷଣ ।

ଗୃହଆଡ଼େ ପାହାଡଙ୍କ ସଙ୍ଗ
ମଝିରେ ଗାଁ ଟିଏ,
ଜାମ୍ବୁ ।

ଯେବେ ସେ ପାହାଡ଼ ମାନଙ୍କରେ ବଡ ବଡ଼ ଗଛ ଥିଲା
ଅଉ ଗାଁ ପାଖରେ କୁଳୁ କୁଳୁ ଝରଣାଟିଏ ଥିଲା
ଗଛମାନେ ସହର ଦେଖିବାକୁ ଗଲେ,
ଝରଣାରେ କେବଳ ପଥର ମାନେ ଜୁଳୁ ଜୁଳୁ ଅନାଉଛନ୍ତି
ଅଉ ଜଳ ଖୋଜୁଛନ୍ତି ।

ସେଠା ସ୍କୁଲ୍ ଘର ଟିଏ ବେତାଳ ପରି ପଚାରି ଥିଲା
'ମାଷ୍ଟ୍ରେ କଣ ଆଉ ଆସିବେନି'?

ଲତାଟିଏ ଚାରିଆଡ଼କୁ ଚାହିଁ କହିଲା
'ଚୁପ୍, ମନ୍ତ୍ରୀ ଶୁଣିଯିବେ'।

—※—

## ସାହିତ୍ୟ

ସାହିତ୍ୟ ସଂସ୍କୃତି ମୂଳରେ —
ମନ୍ତ୍ରୀ ଅଉ ଅଫିସରମାନେ କୃତ୍ରିମ ସାର ଦେଲେ
ଗଛଟି ଖୁବ୍ ହୃଷ୍ଟ ଉଠିଲା
ଯେଉଁଦିନ ଗଛରେ ଫୁଲ ଫୁଟିଲା,
ଭ୍ରମର ଓ ମହୁମାଛି ମାନେ ଉପାସ ରହିଲେ

—※—

୧୯୮୩ ନମ୍ବର କଣ୍ଠା ପିନ୍ଧି ସାଗ କୃଶକୁ ଗୁର୍ଦ୍ଦ ଲ ଚରମ
ପନ୍ତୃପ୍ତିରେ ଅନ୍ଧାର ।

ଜଷ୍ଟରୁଣ ସମସ୍ତର ଫାଶ ଲମ୍ବି ଆସେ
ଦଗନ୍ତରେ ରକ୍ତ ମେଘ
ଗହନରେ କୋକୁଆ ବୁଲେ ଧୂମ୍ର କାଶି କାଶି ।

ସ୍ୱପ୍ନ ସବୁ ହଜିଗଲେ କଳା ଢେଉ ତଳେ
ଗାନ୍ଧିଜୀର ଚିତା ଜଳେ ଅହର୍ନିଶ

କ୍ଷମତା ଲୁଣ୍ଠନ କରେ ସ୍ୱତାର ସର୍ବାନ୍ଧ
ଛପା କାଗଜର ବାଲି ଗର୍ଭେ
ଅପଚ୍ଛାୟ ସତ୍ୟ ବୁଡେ ତଳକୁ ତଳକୁ ।
ଭଗତ୍‌ସିଂର ସ୍ମୃତି ପୀଠେ କିଏ ନେତା ?
କମା ଛେଦ ସ୍ଥାନ ବାକ୍ୟ ଛୁଟି ଆସେ ଢେଉ ଭଳି
କାହା ରକ୍ତ ତାଙ୍କ ପାପୁଲିରେ ?
ଆଜାଦ୍ , ଖୁଦିରାମ ନା ବାଘା ଯତୀନ୍‌ର ?

ଯୌବନର ଫୁଲ୍ ଫିଙ୍ଗି ଦେଇ ବ୍ରିଟିଶ ଜେଲ୍‌ରେ
ଗାନ୍ଧୀପୁଏ ଆରାମ କଲେ ମଣିଷ ଶେଯରେ
କିଏ ସିଂହ ଅଛୁ ?
ଜର୍ବିସ୍ତୁରେ ମୁଣ୍ଡ ଥୋଇ ଦେଶ ମୁକୁଳାଇବ ?



ନିର୍ବୀର୍ଯ୍ୟ ଦେଶ ! କୁହୁଡ଼ିରେ ଭାସମାନ ସହର । ରାଜପଥରେ ଉଦ୍ଧତ କ୍ଷମତାର ଉଲଙ୍ଗ ନୃତ୍ୟ । ସ୍ୱାର୍ଥପରତାର ହାତୀଦାନ୍ତ ମିନାରରେ ବନ୍ଦୀ ଭ୍ରାନ୍ତ ଆତ୍ମା ଗୁଡ଼ିଏ ଦାବୀ କରନ୍ତି ସେମାନେ ଭଲ ଲୋକ ।

କାନରେ ଅଙ୍ଗୁଳି ଦଅ
ପବନରେ ଆର୍ତ୍ତ ଚିତ୍କାର ଭାସିଆସେ ।
ମୁମୂର୍ଷୁ ଭିକାରୀ ମାନେ ପଶି ଆସିବେ,
ଦରୱାଜା ବନ୍ଦ କର ।

ଆମେ ସବୁ ଭଲ ଲୋକ
ହଲଲ ପାଣିରେ ପାଦ ଦଉନା ।
କିଏ କାନ୍ଦୁଛି ?
ଛବଗଣୀ ?   ବିଳାସିନୀ ?
ଆମେ କଣ କରିବୁ ?
ଧର୍ଷଣ ସେମାନଙ୍କ ଭାଗ୍ୟଲିପି ।
ଟେପ୍ ରେକଡରୁ ଫିଙ୍ଗେ ଜଗନ୍ନାଥ ଭଜନ
ବନ୍ୟାପରି ମାଡ଼ି ଆସେ ମାଂସ ଝୋଲର ବାସ୍ନା
କାହାକଥା ଶୁଣିବାକୁ ବେଳ କାହିଁ ?
ପୂଜାରେ ଦୁଇ ଘଣ୍ଟା କଟାଇ ଦେଲେ
କି ଆରାମ !   କି ଶାନ୍ତି !
ରାସ୍ତା ପାଖ ରକ୍ତ ?  କାହାର ?
ଆହାର ପାଇଁ ଧନ୍ଦଉଥିବା ଶିଶୁ ନା
ଚାକିରି ପ୍ରାର୍ଥୀ ଯୁବକର ?

ପୋଷ୍ଟ ମଧ୍ୟାନ ଫର୍ଣ୍ଣିକ ଆବିଚ
ଲନ୍‌ର ଆରାମ ଚେୟାରରେ
ଗୋଲାପ ମଲ୍ଲୀର ବାସ୍ନା ସାଉଁଳାଇ
ସର୍‌ରିୟାଲିଜମ୍‌ ଆଉ ଡାଡାବାଦ୍‌ ଉଖାର
କବିତା ଲେଖିବା କେଡେ ମଜା ।

ପାଚେରୀ ସେପଟ୍ଟରେ ପାଗଳଟିଏ ବଡ଼୍‌ ବଡ଼୍‌ କରୁଚି ।
ମଫସଲର ସୁନ୍ଦରୀ ବାଳିକା ଟିଏ
ସହରର ମହାପୁରୁଷଙ୍କ ଆଦର ପାଇ
ବେଡାଳିଆ ହୋଇ ଯାଇଚି ।

କାଫ୍‌କାଙ୍କ ଡ଼ାଏରୀ ଆଉ ସାର୍ତ୍ରେଙ୍କ ନସିଆ
ଏଥର ଗପରେ ପୂରାଇ ପାରିଲେ
ସର୍କାରୀ ସାହିତ୍ୟ ସଭାର ପାନ ପାଣି
ସୁଲଭ ହୋଇ ପଡ଼ିବ ।

କୋରାପୁଟରେ ରୋଗ ଆଉ ଶୋକ
ହିରୋସୀମା, ନାଗାସାକୀ ଗଢ଼ନ୍ତୁ ।

ଆମେ ବିଚଳିତ ନୋହୁ
କାରଣ ରାଜନୀତି ଭଲ ଲୋକଙ୍କ ପାଇଁ ଟାରୁ ।

*

ଆ ! ମୋର ପ୍ରିୟ କୋରାପୁଟ ! ତୋର ବାଦଲ ଘେରା ପାହାଡ଼, ତୋର ଦିଗନ୍ତନା ବନଭୂମି ଓ ତୋର ମନମତ୍ତନା ସନ୍ତାନ ମାନଙ୍କୁ ଯେ ଭଲ ପାଇଛି , ସେ କିପରି ସହି ପାରିବ ତୋର ବେଦନାକୁ, ତୋର ଯନ୍ତ୍ରଣାକୁ ?

ସ୍ୱର୍ଣ୍ଣ ଲଙ୍କାରେ ନୃତ୍ୟ ବାଜୁଛି,
ମୋ ବନ୍ଧୁମାନେ ନିମନ୍ତ୍ରଣ ପାଇ
ଗୋଟି ଗୋଟି ହୋଇ ଦରବାରକୁ ଚାଲିଗଲେ
ଆଜି ମୁଁ ଏକା,
ପ୍ରସ୍ତାବ ସିନ୍ଧୁର ସେଇ ବୋକା ମଣିଷଟି ଭଳି
ଦସ୍ୟୁ ରତ୍ନାକର ପ୍ରତାଡ଼ନ ବାଲ୍ମୀକିଙ୍କ ବେଶ ଧରି
ଛନ୍ଦ ଓ ଲକ୍ଷଣର ଜାଲ ଫିଙ୍ଗି
ଶ୍ଳୋକ ଧରୁଛି
ବନ୍ଧୁମାନେ କହୁଛନ୍ତି
" ସ୍ରୋତର ଅନୁକୂଳରେ ଆହୁଲା ମାରିବାର ମଜା
ମୁଁ ବୁଝିନ "
ସେମାନେ କ'ଣ ଜାଣି ନାହାଁନ୍ତି
ସୁଅ ମୁହଁର ପଥର ଇତିହାସ ଗଢ଼େ ନି ?
ବିଶ୍ୱର ଘରେ କୋଳପ ପକାଇ
ସହସ୍ର ଭିତରେ ଏକ ହେଲେ
ହିଟଲର୍ କୁଆଁ କରିବେ,
ଯୀଶୁ କ୍ରୁଶ ଚଢ଼ିବେ



ବନ୍ଧୁମାନଙ୍କର ମିଳାମିଶା । ଆନନ୍ଦ ଓ ଉତ୍ତେଜନା । ସ୍ୱରଚିତ କବିତା ପାଠ ଓ ସଭା ସମିତି । ପ୍ରଗତିବାଦ୍ ଗୋଷ୍ଠୀର ଉଚ୍ଛ୍ୱସିତ କଳରବ । ବେଳେ ବେଳେ ତୃତୀୟ ଚକ୍ଷୁ ଖୋଲିଯାଏ । ପଦତଳର ଗହ୍ୱରରୁ ଆର୍ତ୍ତ ଚିତ୍କାର ଭାସିଆସେ

ମୋ ବନ୍ଧୁମାନଙ୍କୁ ମୁଁ ଶ୍ରଦ୍ଧା ଦେଉଛି,
ବାହାର ଦୁନିଆର ଖୋଲା ପବନ
ସେମାନେ ଚାହାନ୍ତି ନାହିଁ ।

କେଉଁଠି ଫୁଲଟିଏ ଅକାଳରେ ଝରିଗଲେ
କ ପକ୍ଷୀ ଟିଏ ଶରବିଦ୍ଧ ହେଲେ
ସେମାନଙ୍କୁ ଜଣା ପଡେନା ।
ସିମେଣ୍ଟ ଉଠାଣରେ ପଦଘର୍ଷଣା କରି କରି
ମାଟିର ସ୍ପର୍ଶ ସେମାନେ ଭୁଲି ଗଲେଣି ।
ରଙ୍ଗିନ୍ କାଗଜ ଘେରା ଗୁଡିକୁ ଗୁନ୍ଧି ଗୁନ୍ଧି
ଆକାଶର ରଙ୍ଗ ସେମାନେ ପାଶୋରି ଗଲେଣି
ଆଜି ମୁଁ ଏକୁଟିଆ ହେବାରୁ
ନଦୀ ମତେ ତା କଥା ଶୁଣାଉଛି,
ପବନ କୁରୁ କୁରୁ କରୁଛି
ଯେଉଁ ମାନଙ୍କ ଡେଣା ନାହିଁ,
ସେମାନଙ୍କୁ ମୁଁ କେମିତି ବୁଝାଇବି
ଫୁଲ, ନଦୀ ଏବଂ ପକ୍ଷୀମାନେ ଏକାଠି ହୋଇ
ମୋ ଦେହରେ ଡେଣା ଲଗାଇ ଦେଇଛନ୍ତି
ମୋ ବନ୍ଧୁମାନଙ୍କ ଉଦ୍ୟାନରେ ମୁଁ ଏକ ଅଚିହ୍ନା ଗଛ,
ଯାର ବାସ୍ନା ସେମାନେ ଗ୍ରହଣ କରିପାରୁନାହାନ୍ତି
କି ଗୁଣି ପାରୁ ନାହାନ୍ତି

—※—

ମନକଥା କହିବା ପାଇଁ ବ୍ୟାକୁଳତା ବେଳେ ବେଳେ ଅସହ୍ୟ ଲାଗେ । ସେତେବେଳେ ମନର ଆବେଗ ଆର୍ଦ୍ର ଭୂମିରେ ଜନ୍ମ ନଅନ୍ତି ବହୁ ଶ୍ରେଣୀର ଉଦ୍ଭିଦ ।

ଅନ୍ଧାରର ପୁଅ ଆଜି କଥାର ସମ୍ରାଟ ଆସୁଚନ୍ତି
ମୁଖର ଦରବାରରେ ଆନୁଗତ୍ୟର ଶପଥ ନେଇ
ସେ ଆମ ମାନଙ୍କୁ କହୁଚନ୍ତି
"ମୁଁ ଜୀବନର ଅମୃତ ନେଇ ଆସିଚି" ।
ମରୁଭୂମିର ବାଲିକୁ ପାଦରେ ଅମଳିଣ ହେଲା ପରେ
ସେ ଗର୍ଜୁଚନ୍ତି 'ଏ ଧରଣୀକୁ ସୁଶ୍ୟାମଳା ମୁଁ କରିବି'
ଜଳଭଣ୍ଡାରରେ ଅସଂଖ୍ୟ ବିଷାକ୍ତ ଜୀବାଣୁ ଅଜାଡ଼ି ଦେଇ
ସେ ଚିତ୍କାର କରୁଛନ୍ତି

'ପାଣିକୁ ବିଶୁଦ୍ଧ କରିବା ଉପାୟ କେବଳ ମୁଁ ଜାଣିଛି '
ତାଙ୍କ ହାତର ବେତ ଦେଖି ମୋ ବନ୍ଧୁମାନେ ଥରିଗଲେଣି,
ଆଉ ଗୋଟି ଗୋଟି ହୋଇ
ପଲାଉ ଥାଳି ଧରି ତାଙ୍କ ମନ୍ଦିରକୁ ଚାଲିଗଲେଣି
ମୁଁ ଏକୁଟିଆ ଠିଆ ହୋଇଛି
ଆଉ ତାଙ୍କ ଉପରେ ଟର୍ଚ୍ଚଲାଇଟ ପକାଉଛି



କେବଳ ବକ୍ତୃତା ଓ
ମିଥ୍ୟା ଷ୍ଟାଟିଷ୍ଟିକସ ପର୍ବତ ପରିମାଣ ଫାଇଲ୍ ଓ
ଅଗଣିତ ପେଟ୍ରୋଲ୍ ଖିଆ ବୈଠକ ଅସ୍ପଷ୍ଟତା ବଢ଼ି ଚାଲିଛି
ଜ୍ୟାମିତିକ ହାରରେ ଦାରିଦ୍ର୍ୟ ଜର୍ଜରିତ ଅନାହାର ଲୁଣ୍ଠିତ
ମସ୍ତକ ଗୁଡ଼ିକୁ ।
ତମର ବଂଶମୂଳ ଜେଭଲିନ୍ ବାଜି
ସେ ମରି ଯାଇଛି
ତାର ମଧ୍ୟ ପରିବାର ଥିଲା,
ପର୍ବତ ଚଢ଼ିବାର ନିଶା ଥିଲା,
ଝୁଙ୍କୁଡ଼ି ଝୁଙ୍କୁଡ଼ି ସ୍ୱପ୍ନ ଫୁଲ,
ସେ ମଧ୍ୟ ତୋଳୁଥିଲା ।
ଯେଉଁ ସତ୍ୟ ତମ ସାମ୍ନାରେ ରହିଛି
ତାକୁ ସମ୍ମାନ ଦିଅ ।
ତାର ଗୋଟିଏ କିରଣ ତମ ଶିରାକୁ ଆସିଲେ
ତମର ପାହାଡ଼ ପାହାଡ଼ ଫାଇଲ୍
ଖାଣ୍ଡବ ବନ ହେବ ।
ତମ ଚନ୍ଦ୍ରଶାଳା ପୁରରେ
ପେଚକ ରହିବ ।
ଭଗବାନଙ୍କ ରାଣ, ତମେ ଚୁପ୍ ହୋଇଯାଅ ।
ତମର ଗାଢ଼ ଗାଢ଼ ଭାଷଣ
କେବଳ ପାଉଁଶ ଝାଡ଼ୁଛି ।

ଯେଉଁ ଝଅଁ ଝୁଲା ଏଠି ଦୁଲାଇ ପଡ଼ିଛି
ଅସଂଖ୍ୟ ଶତାବ୍ଦୀର ଇତିହାସକୁ
ସମସ୍ତ ମହା ଦେଶର ଭୂଗୋଳକୁ
ଧୂଆଁ କରିଦେବାର ଶକ୍ତି ତାହାର ଅଛି ।
ମୌନ ମର୍ଯ୍ୟାଦାରେ, ଅବନତ ମସ୍ତକରେ
ତାର ମହାଯାତ୍ରା ପଥଧାରରେ ଠିଆରହ ।

—※—

ଗୋଟିଏ ଚମକଭରା ମୁହୂର୍ତ୍ତ ଯେତେବେଳେ ବର୍ଷ ବର୍ଷ ଧରି ଢୋ ହୋଇଥିବା ମଇଳା ଧୂଳିସାତ୍ ହୁଏ । ଦିବ୍ୟ ଚକ୍ଷୁର ଅଧିକାର ଅଯାଚିତ ଭାବରେ ମିଳିଯାଏ ।

ଯାହା ସବୁ ଶୁଣିଥିଲି,
ଯାହା ସବୁ ପଢିଥିଲି
ସବୁ ଆଜି ହୁତ୍ ହୁତ୍ ଜଳିଗଲା ।
ଖବର କାଗଜ, ରେଡ଼ିଓ
ସବୁ ବନ୍ୟାରେ ଭାସିଗଲେ ।
ମଣିଷ ବୁକୁର କଅଁ, ମଣିଷ ଆଖିର ଲୁହ
ସବୁ ମିଛକୁ ଶେଷ କରିଦେଲା ।
କୋରାପୁଟର ଜଙ୍ଗଲ କହିଲା
'ଖୋଲପା ନ କାଢିଲେ
ମତେ ତମେ ବୁଝି ପାରିବନି ।
ମୁଁ ନୀରବ ରହିଲି
ଜାତି, ଧର୍ମ, ଶ୍ରେଣୀ, ଭାଷାର ପୋଷାକ ପିନ୍ଧି
ପ୍ରଚୁର ନାଚିଲି ।
କୌପୀନ ମରା ଲୋକେ ମୋ ଖେଳ ଦେଖିଲେ
ଓ କଥା ହେଲେ
' ଆହା ! ଜାନୁଭଙ୍ଗ ନ ହେବା ପର୍ଯ୍ୟନ୍ତ
ବାଟରେ କୃଷ୍ଣମାୟା ଜାଣିପାରିବନି ।'

—※—

## ଇସ୍ତାହାର

ମୋର ଧନ ନାହିଁ କିମ୍ବା କ୍ଷମତା ନାହିଁ
କେବଳ ହାତରେ କଲମଟିଏ ରହିଛି
ସେଇ କଲମ ଦେଇଛି ମତେ ପ୍ରଚଣ୍ଡ ଅହଙ୍କାର
କୁବେର ପୁତ୍ରଙ୍କ ଅଗଣାରେ ଭିଡ଼ ଜମି ଯାଉଛି
କୁହାଳିଆଙ୍କ ପଦତଳେ ଜୟଧ୍ୱନି ଉଠୁଛି
ମୁଁ ନିଃସଙ୍ଗ ତୀର୍ଥ ଯାତ୍ରୀଟିଏ
ଯା'କୁ କଲମ ସ୍ୱୟଂ ସଂପୂର୍ଣ୍ଣ କରିଦେଇଛି
ଶୂଦ୍ର ହେଲେ ବି ବ୍ୟାସ, ବାଲ୍ମୀକିଙ୍କର କୌଳିନ୍ୟ
ମୋର ଉତ୍ତରାଧିକାର ।

ମୋ କଲମ ଥକି ନ ଗଲେ
କ୍ଷମତାର ପ୍ରକାଣ୍ଡ ମହୀରୁହ ଦୋହଲି ଯିବ,
ଧର୍ମର ପ୍ରାସାଦରେ ଗୌରବତା ଲୁଚିଯିବ ।
ନିଶାଚର ମାନେ ଏକାଠି ଆଗେଇ ଆସୁଛନ୍ତି
ନାରାୟଣୀ ସେନାକୁ ସାଥିରେ ନେଇ
ମୋ କଲମକୁ ଛୁଆଁଇ ପାରିଲେ ସେମାନେ ଶାନ୍ତି ପାଇବେ
ସେମାନେ କ'ଣ ଏପର୍ଯ୍ୟନ୍ତ ଖବର ପାଇ ନାହାନ୍ତି
ମୋ କଲମ କାଉଁରିଆ କାଠରେ ତିଆରି ?



## ବିଶ୍ୱରୂପ ଦର୍ଶନ

ବନ୍ଧୁମାନେ କହିଲେ 'ହୁସିଆର'
ସେଇ ଯୋଉ ବେପାରୀଟି
ଆଦିବାସୀର ପେଜତୁମ୍ବାକୁ ଗୋଇଠା ମାରୁଛି
ତାକୁ ବିରୋଧ କରନା,
ତା' ଯୋଗୁ ମନ୍ତ୍ରୀର ଗଣ୍ଡି ପୁଷ୍ଟବନ୍ତ ହେଉଛି' !

ମୁଁ ବୋକାଟିଏ
ମହାଭାରତ ରାମାୟଣ ସତ ବୋଲି ଭାବଥିଲି ।
ହଠାତ୍ ରେ ରେ କାର କରି ଦଳେ ମାଡ଼ି ଆସିଲେ
ଚମକି ପଡ଼ି ଦେଖିଲି,
ସ୍ୱୟଂ ବାଦଶାହ ଚୋଲସ୍ ଲଠି ଧରିଛନ୍ତି ।

ସେବଧାରୀ ମାଇକ୍ ଧରି କହିଲା,
'ଏଥର ବିଶ୍ୱାସ କଲୁତ ?
ଆମେ ସମସ୍ତେ ଅନ୍ଧକାର ସନ୍ତାନ' ।

—卐—

ସଭ୍ୟତାର ଲମ୍ବା ପଥ ଧାରରେ ଚଢ଼ି ଉଠିଛି ଅସଂଖ୍ୟ ବିଶ୍ୱାସ ଘାତକଙ୍କର କଳଙ୍କ ଲଗା ଛୁରୀ । ବିଶ୍ୱାସ ଘାତକତା ମଣିଷ ସମାଜଠୁ ଆହୁରି ପ୍ରାଚୀନ ।

ଆଜି କଣ୍ଟାବାଡ଼ ଆସିପାରିଲନି ସାଥି,
ଅଳ୍ପ ବନ୍ୟା ଆସି ଅଟକିଗଲା
ମଦ ଗିଲାସ ଧରି ଲେଡ଼ିଜ୍ ଝିଅଟି ଆଖି ମାରୁଥିଲା
ସେ ଚମ୍ଭଲ ବନ୍ଧୁ ଲୋକଙ୍କୁ
ଆଗାମୀ ବ ଗାମୀ କୋଠାରେ ପୂରାଇଛି ।

ଶିପ୍ରା ମନ୍ଦିରେ ବେଦନା ଢଳେ ତମକୁ ଏ ପଥଭ୍ରଷ୍ଟ କରାଇଥିଲା,
ଏବେ ବି କୃଷ୍ଣ ଚୂଡ଼ା ଦେହରେ କୁବାଡ଼ି ବସୁଛି
ପକ୍ଷୀ ମାନଙ୍କୁ ବନ୍ଧୁକ ଗୁଳି ଖୋଜି ବୁଲୁଛି ।
ମାତ୍ର ତମେ ଆଜି ଆମ ଭିତରେ ନାହିଁ,
ବଣଜଆଁ ଗୁଳିପଟେ ଆମେ ଯେତେବେଳେ ବସୁ
ଆଜି କଥା ବାର୍ତ୍ତା ହେଉ, 'ନେତାଙ୍କ ଡାହାଳ କୁକୁର ଆମକୁ
କେମିତି କାମୁଡ଼ି ଗୋଡ଼ାଉ ଥିଲା —

ତମ କଥା ମନେପଡ଼େ
ଆଜ ଦୁଇ ଆଖିରେ ଅଶ୍ରୁବିନ୍ଦୁ ଛଳ ଛଳ ହୁଏ ,
ଦେବତା କଣ୍ଟାର ଦଂଶନ ତମକୁ ଅଥୟ କଲା ସାଥି,
ତମେ ଆମ ଭିତରୁ ଛିଟିକି ପଡ଼ିଲ ।
ଶଙ୍ଖ ଶିଖରରେ ଘଣ୍ଟା ଧ୍ୱନି ବାଜି ଉଠୁଛି,
ସେମାନେ ଆନନ୍ଦରେ କୋଳାହଳ କରୁଚନ୍ତି,
ଛୁଞ୍ଚ ଭିତରର କୋହ ଗୁପିରଖି,
ଏଥର ବନ୍ଧୁକ ନଳ ତମ ଆଡ଼େ ହଲିବାକୁ ହେବ ।



ମୋର ପାଠ ପଢାର ଅହଙ୍କାର
ପୁସ୍ତକସ୍ତୂପ, ବାକ୍ ସ୍ୱାଧୀନତା,
ମତେ ବନ୍ଦୀ କରିଥିଲେ ।
ମୁଁ ଯାଇଥିଲି ଜଙ୍ଗଲର ଗୋଟିଏ ଛୋଟିଆ ଗାଁକୁ
ହାତରେ ମୋର ସଭ୍ୟତାର ମଶାଲ
ଲୁଗା ପିନ୍ଧି ନ ଥିବା ଲୋକଙ୍କୁ
ମୁଁ ଲୁଗା ଦେଖାଇଲି
କନ୍ଦା, ପତ୍ର ଖାଉଥିବା ଲୋକଙ୍କୁ
ଗହମ, ଚାଉଳ ଦେଲି
ସେମାନଙ୍କୁ ବୁଝାଇଲି
କେମିତି ସହରର କୋଠାଘରେ
ବିଜ୍ଞାନର ପ୍ରଦୀପ ଜଳୁଛି ।

ବୁଢ଼ାଟିଏ ପଚାରିଲା
'ତମେ ଫୁଲପରି ଫୁଟି ପାରୁଚ' ?
'ଝରଣା ପରି ବହି ପାରୁଚ' ?
ମୋ ପାଖରେ କି ଉତ୍ତର ରହିଚି ?



# ଅରୁଣ ସୌରୀ

[ 'ସାମ୍ବାଦିକ ଅରୁଣ ସୌରି—ଏକ ବିସ୍ଫୁ, ଏକ ବଜ୍ରଧର' ]

ତମେ ଏକ ଅଗ୍ନି ଗୋଲକ ଅରୁଣ ସୌରି
ସାପ ଚରି ଯାଇଥିବା ଅନ୍ଧାରି ସୁଡ଼ଙ୍ଗକୁ
ତମେ ଆଲୋକିତ କରିଦେଲ ।

କଅଁଳ ଘାସକୁ ଚକଟି ଥିବା କଠିନ କଠଉ ମାନେ
ତମ କଲମର ନାଚ ଦେଖି ଦେଖି
ସ୍ଥିର ହୋଇଗଲେ ।

କୁଡ଼ିଆର ମେଷ ମାନଙ୍କୁ କତଲଘରକୁ ଟାଣିନେଉଥିବା ପାଗବନ୍ଧାଲୋକେ
ଚମକି ପଡ଼ିଲେ ।

ଯେଉଁ ମୈଦାନରେ ସର୍ପମାନେ ଆଲିଙ୍ଗନ ରତ

ଆଜ ବ୍ୟାଘ୍ରମାନେ ଲଙ୍ଗୁଡ଼ ଟେକିଛନ୍ତି
ସେ ପ୍ରାନ୍ତରକୁ ତମେ ଉଲ୍‌କା ଭଳି ଆଲୋକିତ କରିଦେଲ !

ଇତିହାସର ପେଜ୍‌କୁ ଯେଉଁମାନେ ରକ୍ତାକ୍ତ ପଥଉପରେ ଟିଙ୍କିନେଉଛନ୍ତି
ସେମାନେ ଶଙ୍କି ଯାଇଛନ୍ତି ।

ତମ ପାଇଁ ଅପରାଧର ଅଭିଧାନ ଛପାଇ ଛପାଇ
ତମ ଝାଡ଼ୁରେ ଆଡେଇ ହୋଇଯାଇ
ସେମାନେ ଅଳିଆ ଖାତରେ ଘୁଂଗୁଡ଼ି ମାରିବେ ।



# ପଥଭ୍ରଷ୍ଟ

କେହି ଚିହ୍ନୁ ନାହାନ୍ତି,
ମନ୍ତ୍ରୀ, ଏସ୍. ଡି. ଓ., ଗଭର୍ଣ୍ଣିଂବଡର ସଭ୍ୟ ମାନେ
ସ୍ତ୍ରୀ, ପୁତ୍ର, କନ୍ୟା ଓ ସାଙ୍ଗ ମାନେ ।
କାଉନ୍ସିଲର୍ ମାନେ ମୋ ଷଷପୁରେ କଥାବାର୍ତ୍ତା ହେଉ ନାହାନ୍ତି,
ବଡ଼ ବେପାରୀ ମାନଙ୍କ ଆଙ୍ଗୁଠି ମୋ ଦିଗକୁ ଗତି କରୁନ
ଗୁଣ୍ଡାମାନେ ଧମକ ଦବା ଭୁଲି ଯାଇଛନ୍ତି ।

ପଂଷ୍ଟେ କଲେଜ ଛାତ୍ର
ଯେଉଁ ମାନେ ମୋ ନାଆଁକୁ ଥୋଇ
କାନ୍ଥ ବାଡର ଝଦ ଲେଖୁଥିଲେ
ଏବେ ଚୁପ ଚୁପ୍ ।
ସହରର ବଡ଼ ଲୋକ ଏବେ ମୋତେ ଭୋଜ ଘରକୁ ଡ଼ାକିନଲେଣି
କେତେ ଶୀଘ୍ର ମୋ ରକ୍ତ ଶିଥିଳ ହୋଇ ଗଲା ।
ଓ ମୋ ଆଖିରେ ଧରଳ ମାଡ଼ିଗଲା,
ବାଁ ପଟକୁ ଯାଉଁ ଯାଉଁ ହଠାତ୍ ଡାହାଣ ପଟକୁ ଚାଲି ଆସିଛି ।



୧୯୮୧ ଫେବୃୟାରୀ ୨୩ । ସମୟ ସନ୍ଧ୍ୟା ସାଢ଼େ ସାତ । ରାୟଗଡ଼ କାଗଜ କଳ ରାଧାକୃଷ୍ଣ ମନ୍ଦିରରେ ଖବର କାଗଜ ପଠନ ରତ ଯୁବକ ରମାକାନ୍ତ ଘାଷିତ । ପଂଚେ ଅଣ-ଓଡ଼ିଆ ଗୁଣ୍ଡା ପ୍ରବେଶ କଲେ ମନ୍ଦିର ଭିତରେ । ଘାଷିତଙ୍କୁ ସେଦିନ ମାଡ଼ ଦିଆଗଲା, କାରଣ ସେ ଥିଲେ— 'ଶାଳଚନ୍ଦ'ର ଜଣେ ସକ୍ରିୟ ସଦସ୍ୟ ।

ଜୟ କଟକ ଭୁବନେଶ୍ୱର,
ଘାଷିତ କାହିଁକି ମଲା ?
ତିନୋଟି ଚନ୍ଦ୍ର ଉଦିଆ ଚଟୋ ପିଲା
ଆଜି ଗୋଟିଏ ଯୌବନବନ୍ତ ନାସ୍ତି
ଏବେ ମଟି ଦଉଆରେ

କୋରାପୁଟ ମାଟି କେତେ ପଇସାରେ ନିଲାମ କଲ ?
ରାୟଗଡ଼ ପବନରେ ଦୁର୍ଗନ୍ଧ ଖେଳି ବୁଲୁଛି
ନାଗାବଳୀ ବିଷାକ୍ତ ହୋଇ ଯାଇଛି
ଜନ ପଲ୍ଲୀରେ ଫେରନ୍‌ଜାଇଟିସ୍, ବ୍ରଂକାଇଟିସ୍
ଚକାମାଡ଼ି ବସିଛନ୍ତି

ସାରଳା, ଉପେନ୍ଦ୍ରର ଭାଷା ଏ ମାଟିର ଡାକ ମେଳିବ ବୋଲି
ଘାଷିତ ତାର ରକ୍ତ ଢାଳି ଦେଲା
ତମ ପାଖେ ସେ ଶୁଦ୍ଧ ରକ୍ତର ମୂଲ କାହିଁ ?
ବଣିକ ଚୁମା ଖାଇ ଖାଇ,
ତମ ଦେହ ସାରା ସିଫିଲିସ୍‌ର କ୍ଷତ ମାଡ଼ି ଯାଇଛି ।

—✪—

## ଧଳା ଓକାଯ୍ତି

ତୁମେ ଆଇନ୍ କାନୁନ୍ କଥା କହୁଛ,
ଆଇନ୍ ବଡ ଲୋକଙ୍କ ଗେଟ୍ ପାଖରେ ଧକଉଛି,

ଆଜି ଗରିବ ଦେଖିଲେ ଭେଁ ଭେଁ କରୁଛି ।
ସରକାରୀ ଘୋଷଣା ଏକ ମନୋରମ ମୁଖାଟିଏ
ଯା ପଛରେ କଙ୍କଡା ବିଚ୍ଛୁ ଓ ବିଷାକ୍ତ ସର୍ପ ମାନେ ରତି କରୁଚନ୍ତି,
ଖବର କାଗଜ ମାନେ ଭାଟ ଓ ବିଦୂଷକର ପଗଡ଼ି ପାଇଁ
ଠେବ ମରା ହଉଛନ୍ତି ।

ଦାନ୍ତ ଓ ନଖରୁ ଥପ୍ ଥପ୍ ରକ୍ତ ଝରୁଥିଲେ ବି—
ଷଣ୍ଢା ସେ ଗୁଡ଼ିକୁ ଆଦର ପଜାଇ ଚାଲିଚି ।
ଗାନ୍ଧୀ, ଜେ. ପି. ଙ୍କର ସୁନ୍ଦର ସ୍ୱପ୍ନ ଗୁଡ଼ିକର
ପକ୍ଷ ଚୋଡ଼ି ଦିଆ ଯାଇଛି ।
ସତ୍ୟ ଅସହାୟ ହୋଇ ପଡ଼ୁଛି,
ଅହିଂସା ରାଜଘାଟର କଫିନ୍‌ରେ ଶୋଇ ପଡ଼ୁଛି ।



## ହୁସିଆର

ଦଳେ ବଂଧୁ କହିଲେ,
ମନ୍ତ୍ରୀ କିମ୍ବା ଏସ୍. ଡ଼ି. ଓ. ସବୁଜ ପତାକା ନ ଧରିଲେ,
ସାହିତ୍ୟ ଗାଡ଼ି ଚାଲିବ ନ
ବନ୍ଧୁକ ନ ଫୁଟାଇଲେ,
କବି ମାନେ ରେସ୍ ଦଉଡ଼ି ପାରିବେନି ।

କଏ ଜାଣିନି ଯେ,
ସ୍ଥିର ପାଣିରେ ଢେକା ପକାଇ ତରଙ୍ଗ ସୃଷ୍ଟି ନ କଲେ,
ଶୋଇଥିବା ପଥରକୁ ଧକ୍‌କାଟିଏ ନ ଦେଲେ,
ସାହିତ୍ୟରେ ଭାତ ହଜମ ହୁଏ ନା ?
ଲୋକଙ୍କ ପିଠିର ପିସ୍ତମିଣ୍ଡ ଉପରେ ଚଢ଼ି
ଯେଉଁମାନେ ଇନ୍ଦ୍ରଧନୁ ଛୁଇଁବାକୁ ବ୍ୟାକୁଳ
ସେମାନଙ୍କ ଗୋଡ଼ ଭଙ୍ଗି ଦେଲେ
କବିତାକୁ ଭଲ ନିଦ ହୁଏ ।
ମନ୍ତ୍ରୀ, ଏମ୍. ଡି. ଓ. ଚପରାଶି ରହନ୍ତୁ,
ସାହିତ୍ୟ- ଏକ ଡିନାମାଇଟ୍ ଫିଙ୍ଗା ପଥର,
କବିତା ଏକ ଟାଇମ୍ ବୋମା ।



# ପ୍ରୋଫାଇଲ୍ ଗୋଟିଏ ସହରର

ଆଲୋକିତ ବିପଣୀରେ ଭାଗ୍ୟବାନ୍ ଶେଠଙ୍କ ଭିଡ଼,
କାର୍ ଓ ସ୍କୁଟର ଧୂଳିର ପିଚ୍ ରାସ୍ତା ଝକ୍ ଝକ୍ ଦେଇ
ପ୍ରସାଧନ କେନ୍ଦ୍ର ଫାଟି ପଡ଼େ ନାରୀ କୋଳାହଳେ
ରାସ୍ତାଗଡ଼ ମୁଣ୍ଡ ଟେକେ, ପୁଣି ଶୋଇଯାଏ ରାତି ଆଉଁଷାକୁ ପାଇ ।

ସିଫିଲିସ୍ ଝରଧର ନାରୀଟିଏ ରାସ୍ତାକଡ଼େ ଠିଆ
ଦି ପଇସା ଦେବ କିଏ ? ଘରେ ତାର ରୁଗ୍ଣ ଶିଶୁ କାନ୍ଦେ ।
ଏ ସମାଜ ଟାଣି ଆଣିଥିଲା ଯା'କୁ ଭବାନୀପାଟଣା କିମ୍ବା ବିଜୟନଗରୁ,
ମୋହର ମାର ତାକୁ ବାଧ କଲା ଶୋଇବାକୁ ଶର ଶଯ୍ୟା ପରେ ।

ବସ୍‌ଷ୍ଟାଣ୍ଡେ ମନ୍ତ୍ରୀସଙ୍ଘ, ମଇଁଷି ଓ ଛେଳି ପାଇଁ ରୁଣ୍ଡ ଆଦିବାସୀ
କାନ୍ଥେ ଚିତ୍ର ନେତାଜୀ ଙ୍କର, 'ସମାଜ ବାଦ' ର ନାରା ଦିଏ ଭଡ଼ାଟିଆ
ଡାକ ବଙ୍ଗଳାରେ ଉତ୍ସବ ଚଳିଛି, ମନ୍ତ୍ରୀ ଖୁସି ହେଲେ,
ବ୍ଲକଣ୍ଟେ ଉପହାର ମାଗିବ ସେ ଚନ୍ଦୁ ଭେଟି ଦେଇ ।

ଭଲ ଲୋକ ମାନେ ବ୍ୟସ୍ତ ନିଜ ନିଜ ପରିବାର ନେଇ,
ପୁଅ ପାଠପଢା ଆଉ ଝିଅ ବାହାଘର ପାଇଁ ଟଙ୍କା ଦରକାର,
ଖାଅ, ପିଅ, ରୋଜଗାର କର, ଗୁଣ୍ଡା ହାତେ କିଏ ପ୍ରାଣଦେଲା
କୋଉଠି ମନ୍ତ୍ରୀ ଲୁଟିଲା ଲକ୍ଷେ ଟଙ୍କା, ଭାବିବାକୁ ଫୁର୍ସତ୍ ନାହିଁ ।

କରତାଳ ଧରି ପଂଝେ ବ୍ଲାକହୁଣ୍ଡ ମୂର୍ଖ ବସ୍ତା ପରେ,
ଧର୍ମସଭା ଉଦ୍ୟୋଗ କୁହାଟରେ କୁମୁଟି ଓ ମାରୁଆଡ଼ଙ୍କର,
ବଣଭୋଜି ପାଇଁ ରୁଣ୍ଡ କଲେଜ ପିଲେ, ଦ୍ୱାରକା ପୀଠରେ
ମୁନିଙ୍କର ଅଭିଶାପ ସର୍ପ ପରି ଲମ୍ବିଲମ୍ବି ଯାଏ ।



## ଦରବାରୀର ସାହିତ୍ୟ

ରାଜାଙ୍କ ମୃଦଙ୍ଗ ବାଜିଲା
ଚକ ଚକିଆ ସାହିତ୍ୟିକ ମାନେ
ଗୋଟିଏ ପରେ ଗୋଟିଏ ଗଡ଼ିଲେ
ସୁନା ପିଂଜରାରେ ବସି
ବନ୍ଦନା ଗାଇଲେ ।

ଲୁହା ଗୋଇଠି ମାଡ଼ ଖାଇ ଥିବା ଫୁଲର ପାଖୁଡ଼ା ସବୁ
ସେମାନଙ୍କ ଆଖିରେ ପଡ଼ିଲା ନାହିଁ,
ରୁମି ହୋଇ ଉଡ଼ୁଥିବା ହଂସ ପର ସବୁକୁ
ସେମାନେ ଦେଖିଲେ ନାହିଁ ।

ମୁଁ ବଣର ଚଢେଇ ଟିଏ,
ତମେ ବ୍ୟାଧ ପଠାଇ
ମତେ କାଣ୍ଡ ବନ୍ଧ ଦେଇ ପାର,
ମାତ୍ର ସୁନା ପିଂଜରୀ ଦେଖାଇ
ମତେ ଆପୁତ୍ତ କରି ପାରିବ ନା ।

ମୋ ବଣରେ ଫଳ, ଝରଣାର ଜଳ
ଯେଉଁ ଦିନ ସରିଯିବ,
ମୁଁ ସେଦିନ ଫୁର୍ କିନା ଉଡ଼ିଯିବ,
ଏକ ଅଜଣା ଦିଗନ୍ତର ସନ୍ଧାନରେ ।



# କ୍ଷୋଭ

ଶ୍ଳେଟ ଶିଶୁ ମାନଙ୍କ ଜୁଇ ଜଳୁଥିଲି ବେଳେ
ଯୁବତୀ ମାନଙ୍କ ସିଂଦୂର ଧୋଇ ହେଉଥିଲି ବେଳେ
କିଏ ଚୁପ୍ ରହିପାରେ ?

ହିଟ୍‌ଲର୍‌ର ଲୁହା ସଂଘାକୁଆ ପ୍ୟାରିରେ ଗୁଳୁଥିଲି ବେଳେ
ଅଣ-ଓସାରିଆ ଅନ୍ଧ କୋଠରୀରେ
କହାଁକୁ ଜଆଉଁ ଥିଲେ
ସର୍ତ୍ତେ ଓ କ୍ୟାମ୍ସ ।

ଆୟର୍‌ଲ୍ୟାଣ୍ଡ୍‌ର ପଥୁରିଆ ମାଟି ଉପରେ
ମାତାଲ ସୈନିକ ଦଳ
ରକ୍ତ ରେଖା ଆଙ୍କୁଥିଲି ବେଳେ
ଅଗ୍ନି ଫୁଲ ଫିଙ୍ଗୁଥିଲେ
ଗ୍ରେଗରୀ ଓ ୟେଟ୍‌ସ୍ ।

ଅମଣିଆ ଷଣ୍ଢ ଭଳି
ଶିଢ଼ କାରିଗର ମାନେ ସବୁ ବେଳେ ଅମାନିଆଁ
ଏ ମାଟିର ଧର୍ଷଣ ବେଳେ
ବନ୍ଧୁ କଲମ ଧାରୀ ଭାଇ,
ଶାଗୁଣାର ପାଦୁକା ଧରି ଝୁଲିଚନ୍ତି,
ଠୁକୁରିଏ ମାଂସ ଆଶାରେ ।

--卐—

# ସତସ୍ତୁରୀ

କଥା କହିବାକୁ ମତେ ଲାଜ ମାଡୁଛି,
ପାଗ ବାନ୍ଧିବାକୁ ଏତେ ସମୟ ଲାଗିଗଲା ଯେ
ତମେ ଲଢେଇରେ ଆହତ ହୋଇଗଲ ।
ମୁଁ ଜ୍ୟୋତିଷ ଡାକି ମୁହୂର୍ତ୍ତ ଠିକ୍ କରୁ କରୁ
ମୈଦାନ୍ ସାଫ୍ ହୋଇ ଗଲା ।
ମୁଁ ଅପେକ୍ଷା କଲି ଝିଅର ବିବାହ ଓ ପୁଅର ପାଠ ପଢ଼ାକୁ ।
ତା ପରେ ରେ ରେ କାରି ଶିଢ କରି ଧସାଇ ପଶିଲି
ସେତେବେଳକୁ ବନ୍ଧୁ ମାନେ ବନ୍ଦୀ ହୋଇ ସାରିଚନ୍ତି
ରଣ କ୍ଷେତ୍ରରେ ଶତ୍ରୁର ବିଜୟ ଧ୍ୱଜା ଉଡ଼ୁଚି
ବିଜୟୀ ରଜାଙ୍କ ଉପହାସ ଆଜି ଚିଚିକାର
ମୋ କାନର ମହତ ସାରି ଦେଲା ।
ହଠାତ୍ ସବୁ ବଦଳି ଗଲା,
ମୁଁ ଦେଖିଲି ଉଦ୍ଧତ ମହାରାଜ
ଧୂଳିରେ ଗଡୁଚନ୍ତି,
ଆଜି ଭୂଇଁରେ ନାକ ଘଷୁଥିବା ଲୋକେ
ହର୍ଷଧ୍ୱନି କରୁଚନ୍ତି ।

—⁂—

# ମୋହଭଙ୍ଗ

ସହରରେ ଯେତେ ଦିନ ବୁଲୁଥିଲି-
ଡିଗ୍ରୀ ଧାରୀଙ୍କ ସହ ତର୍କ କରୁଥିଲି
ମୋ ନିରାଶା ସେତେ ବଢୁଥିଲା ।

ସେକେଣ୍ଡ୍ ହ୍ୟାଣ୍ଡ୍ ବସ୍ତ୍ର ଗୁଡ଼ିକ-
ବ୍ୟାଙ୍କ୍‌ର ନୂଆ ନୋଟ୍ ଭଳି
ମୋ ବାକ୍ସକୁ ଆସୁଥିଲେ ।

ଏବେ ମୁଁ ଜଙ୍ଗଲରେ ବୁଲୁଛି-
ଖଣ୍ଡ ବର୍ଷାର ସନ୍ତାନ ମାନଙ୍କ ଠାରୁ,
ନୂଆ କଥା ଶୁଣୁଛି,
ଏଠି କ'ଣ ଗାନ୍ଧୀର୍ ଭାରତ ଅଙ୍କିତ ବାସ କରୁଛି ?

—⁂—

# ସମାଜର ସ୍ତମ୍ଭମାନେ

ଏ ସହରର ଢେଙ୍ଗା ଲୋକ ମାନେ
ଯେଉଁମାନେ ଗାଁ ଗହଳରୁ ରକ୍ତ ସଂଗ୍ରହ କରି,
କ୍ରମାଗତ ସ୍ୱରରେ କହି ଚାଲିଚନ୍ତି
ମୋର ନିନ୍ଦା ଗାଉଚନ୍ତି ।

ମୁଁ ଯେବେ ନିର୍ଜନ କୋଠରୀରେ-
ଏଲିୟଟ୍ ଆଉ ମାଲାର୍ମେଙ୍କୁ ଜପୁଥାନ୍ତି-
ସେମାନେ ମତେ ପ୍ରଶଂସା କରୁଥାନ୍ତେ ।

ମୁଁ ଏବେ ରାଜପଥରେ ଠିଆ ହୋଇଛି-
ଆଜି ଚିତ୍କାର କରି ସମସ୍ତଙ୍କୁ କହୁଛି,
ବଡ଼ ଲୋକଙ୍କ ପାଖକୁ ଯାଅନା,
ସେମାନେ ସୈତାନ୍‌ର ଦସ୍ତାବଜ୍‌ରେ ସ୍ୱାକ୍ଷର ଦେଇଛନ୍ତି,
ତମକୁ ସଜନା ଛୁଇଁ ଭଳି ଚୋବାଇ ଫୋପାଡ଼ି ଦେବେ ।

ଆମ ପେଟ ଶୁଖାଇ ପାଟିକୁ ବନ୍ଦ୍ କରିବା ପାଇଁ-
ମନ୍ତ୍ରୀ, ଏସ୍. ଡି. ଓ. ଙ୍କ ହାତଗଣ୍ଠି ପଡ଼ିଛି
କ୍ଷମତାର କମାର ଶାଳରେ ଖଣ୍ଡା ପଜାଉ ଥିବା ଲୋକେ
ଆମକୁ ହାଣି ଦେବାକୁ ଧମକାଉଛନ୍ତି,
ମୁଁ ଆଶ୍ଚର୍ଯ୍ୟ ହଉଛି,
ଏମାନେ ଇତିହାସରେ ମାଟ୍ରିକ୍ ପାସ୍ କଲେ କେମିତି ?



## ଯାହା ଅଟେଁ ନିଭାଇଛି

ମାଳପିନ୍ଧା ଚୌକି ମଣିଷ ଚିତ୍କାର କଲେ
'ଇଗଲ୍‌ର ଡେଣା ଦ'ଟା ଭାଙ୍ଗିଦିଅ,
ଏ' ମଣିମାଙ୍କ ଉଦ୍ଧାର ଘାସ ଦେଖିଦେଲଣି
ପାଖକୁ ଆସି ଚିହ୍ନିଲି
ଲକ୍ଷ୍ମଣ ନାୟକର ଫାଶିଖୁଣ୍ଟ,
ଏମାନେ ତିଆରି କରିଥିଲେ ।



# ରାୟଗଡ଼ରୁ ବିଦାୟ

ଜୁଲଇ ସତର ଛେୟାଅଣି
ଆକାଶରେ ବିଷଣ୍ଣ ଅପରାହ୍ନର ସୂର୍ଯ୍ୟ
ପ୍ଲାଟଫର୍ମରେ ପ୍ରଗଲ୍‌ଭ ସୂର୍ଯ୍ୟମୁଖୀ ବନ୍ଧୁଙ୍କର ଭିଡ଼
ଦୂର ପାହାଡ଼ ତଳେ ଋଷିକନ୍ୟା ନାଗାବଳୀ ନାଚୁଛି 'ଛମ୍ ଛମ୍'

ଏଇଠି କ୍ୟୁବିଷ୍ଟ କଳାକାର ଭଳି
କାଗଜକଳ, ଚିନିକଳ, ଆକାଶର କ୍ୟାନ୍‌ଭାସ୍‌ରେ
ଧୂମ୍ରକୁଳୀରେ ଆଙ୍କିଦିଅନ୍ତି ଅଜସ୍ର ଦୁର୍ବୋଧ୍ୟ ଆର୍ଟ ।

ଏଠି ସୂର୍ଯ୍ୟ ଦେଖେ ଅରଣ୍ୟର ଶୋଭାଯାତ୍ରା ସହର ବୁକୁରେ
ଚନ୍ଦ୍ର ଡୁବେ ଲଜ୍ଜାବତୀ ବନଲତାର କବରୀରେ,
ସମସ୍ତ ଚତୁଷ୍ପଥ ଶୋଇଯାଏ କନ୍ଦମଲ୍ଲୀରେ
ଚୁଗୁଲିଆ ଇତିହାସକୁ କୋମଳ କୋଳରେ ଜାକି ।

ଏଠି ଅସତ୍ୟର ଝଣ୍ଡାଖେଳରେ ମୁଁ ଆହତ ହୋଇଛି
ଜହାଁପନଙ୍କ ଦରବାରର ଧାସରେ ପିଚ୍ଛିଳ
ଆଜି ବଣୁଆ ମୂଲକର ଚେରମୂଳ ଖାଇ ରୂପବାନ ଚ୍ୟବନ ବନିଯାଇଛି,
କେତେ ବିଷଦଗ୍ଧ ଦିନ ଆଜି ସ୍ୱପ୍ନ ଭଙ୍ଗା ରାତି
ମଧୁର ଆଲୋକ ଭରା ମୁହୂର୍ତ୍ତ
ଯାହା ସମୁଦ୍ରେ ଅନ୍ଧାରକୁ ଦୂରକୁ ଠେଲି ଦେଉଛି
ଆଜି କେବଳ ଟୋପା ଟୋପା ସ୍ମୃତି ।

ଆମ ଘରର ଝଡ଼ରେ ବସ୍‌ଷ୍ଟାଣ୍ଡ୍‌ର ନାଦ ଶୁଣୁଥିଲି
ଗାଡ଼ିଲେଭୀ ବ୍ୟବସାୟୀ ପରସର ଅପମାନ ଯାଉଥିଲି
କଳମର ଡାକବାଙ୍ଗ୍ଲା ଉଁକି ବଙ୍ଗଳା ଚମକି ପଡୁଥିଲା ।
ସନ୍ଧ୍ୟାର ପିଠିରେ ଚଢ଼ି ମହିଁଷିଘରଆଣି ମନ୍ଦିରର ଘଣ୍ଟାଧ୍ୱନି
ଯେତେବେଳେ ସହର ବୁକୁଆଡ଼ିବ

ମର୍କ୍ସ ଓ ବାର୍‌ନାଇଟ୍‌ ମାନେ
ଯେତେବେଳେ ରୂପ ଦେଖେଇ ଫୁଲେଇ ହେବେ
ମୋର ପ୍ରିୟ ପୁସ୍ତକ ମାନେ ଉପୂର୍ଣ୍ଣ ଦୃଷ୍ଟିରେ ଚାହିଁବେ
ତାଙ୍କ ସପତଣୀ ମୋର ଟାପ୍ୟାକୁ,
ଯା ହଳଦାସୀ ଆଖିରେ ତୁଳସୀ ଚଉରା ଘାଟ ଖୋଜୁଥିବ
ଅତୀତର ଅଗଣିତ ରଙ୍ଗୀନ ମୁହୂର୍ତ୍ତର ସ୍ମାରକୀକୁ ।

--卐--

# ଅଗ୍ନିକଣାର ଆତ୍ମକଥନ

ପିଠିରେ ଚାବୁକର ସ୍ପର୍ଶ
ଗୋଡ଼ରେ ଶିକୁଳ,
ମୋର ଅପରାଧ,
ମୁଁ ଆଲୋକର କଣାଟିଏ ।
ଅନ୍ଧାରର ପୁତ୍ର ମାନେ
ମଣିଷକୁ ବନ୍ଦ କରିବା ଚକ୍ରାନ୍ତକୁ ମୁଁ ବିରୋଧ କରିଚି ।
ମୋ ସମାଜ ମୋତେ ତ୍ୟାଗ କରିଚି
କାରଣ ସୂର୍ଯ୍ୟଗର୍ଭରୁ
ମୁଁ ଖସିଆସିଚି ଏକ ବେଦନାତୁର ମୁହୂର୍ତ୍ତକୁ ।
ଅଶ୍ରୁବିନ୍ଦୁଟିଏ ମତେ ଟାଣିଆଣିଚି
ମୋ ଅବୁଝ କୋଠରୀର ଆତ୍ମରକ୍ତ ପୀଠରୁ ।
ମୋ ଆଗରେ ସ୍ୱତନ୍ତ୍ରତାର ଅରଣ୍ୟ
ଯେଉଁଠି ଭେକର ହିଂସ୍ର ହେଣ୍ଟାଳ ଶୁଭେ ।
ମୁଁ ସୂର୍ଯ୍ୟଙ୍କୁ ଡାକିଲେ
ସେ କାଳେ ଚାଲି ଆସିବେ ବୋଲି
ମତେ ରାତ ବନ୍ଦୀ କରିବାକୁ
ଚକ୍ରାନ୍ତ କରୁଚି



# ଉତ୍ତରାଧିକାର

ବାବୁରେ,
ତୁ ଆସିଲୁ ଏକ ଦୁନିଆକୁ
ଯେଉଁଠି ଗୋଟିଏ ମଣିଷର ସୁନା ସ୍ୱପ୍ନ ପାଇଁ
କୋଟିଏ ମଣିଷ ଝାଳ ଜରଜର ।

ପୋଲିସ୍‌ର ଲାଠି, ମିଲିଟାରୀର ବାୟୋନେଟ
ମୋ ଦେହକୁ ଖେଳ ଫଡ଼ଆ ବାଣ୍ଟି ଦେଇଛନ୍ତି
କାରଣ ମୁଁ ଜାଣି ଗଲି
କେମିତି ଆମଠୁଁ ଲିଟର ଲିଟର ରକ୍ତ ନେଇ
ସେମାନେ କୁଣ୍ଡର ଗୋଲାପକୁ ନାଲି କରୁଛନ୍ତି ।

ତୋ ମାଆର ଶାଢ଼ି ଗଣ୍ଠି କାଟି ମୁଁ ଆଜି ବୁଲିଲି
ମଣିଷ ଝୁଣ୍ଡା ମହଲ ବାଘ ସମ୍ଭବ
ରକ୍ତାକ୍ତ ଲଢେଇ ପାଇଁ ।

ବତ୍ସରର ସୂର୍ଯ୍ୟୋଦୟ ପରେ
ମୁଁ ଯେତେବେଳେ ତୋର ମନେ ପଡ଼ିବ
ତୋର ଦେହସାରା ବିଜୁଳି ଖେଳିଯିବ
ଆଜି ସାରା ଦୁନିଆ ଆଗରେ
ତୁ ଛାତି ଫୁଲାଇ ପଟେଟପୁ ଧେଇ ପଶିବୁ ।



# ଆତ୍ମ କଥନ

ଧୂମ୍ର ମଳିନ ମୁଲକର ଡ଼ିକମ୍ ହୁକୁମ୍ ଦେଲେ
'ବ୍ଲେଗକାଠବାଗଙ୍କ ଉଦ୍ୟାନରେ ସଯତ୍ନ ବର୍ଦ୍ଧିତ
ସଭ୍ୟର ଶକ୍ତିମାନ୍ ବରଗଛ ଉପରେ
ଯେ କୁହାଟି ନେଷ୍ଟ ବସଉଛି,
ତାକୁ କଫିନ୍ ଭିତରେ ପୂରାଅ' ।

ନେହେରୁଙ୍କୁ ନହାଣ ମୂନରେ ମାଣୁଥିବା ଉଜୀର ଗର୍ଜନ କଲେ
'ଗ୍ରୀମ୍ ଏବଂ ପାଲେଷ୍ଟାଇନ୍ ଭଳି
ଏ ଦଗଦଗା ଅରଣ୍ୟ ସମାଜକୁ,
ଯେ ଉଦ୍‌ଭ୍ରାନ୍ତ କରୁଛି, ତାକୁ ବଜ୍ର ବାଣ ଦେଖ ।

ମୁଁ ଅରମା ଅଳିଆରେ ବଢ଼ୁଥିବା ଘାସ ଗଛକୁ ଭଲପାଇଥିଲି,
କଲଘ କଅଁଳର କାଙ୍କଡ଼ା ପୋକକୁ ଆବିଷ୍କାର କରିଥିଲି,
ଜଳୁଥିବା ଜଙ୍ଗଲର ଲୁହକୁ ସଗର୍ବରେ ବୁକୁର ତୋଳିରେ ଧରିଥିଲି,
ସହରର ଶାନ୍ତ ଶୀତଳ ଦୃଷ୍ଟିର ସଳିଳକୁ ଚହଲାଇ ଦେଇଥିଲି ।

ଭୁବନେଶ୍ୱର ବାଦଶାହାର ସିପାହୀ କହିଲା,'ଖବର୍ଦ୍ଦାର' ।
କୋଣାର୍କର ମାଟିର ପେଟକଟା କୁମ୍ଭୀ କହିଲା, 'ହୁସିଆର୍' ।
ପଥରର ଛାତିରେ ଚକ୍ଷୁ ପ୍ରହାର କରୁଥିବା ବଣୁକ କହିଲା,'ସାବଧାନ' ।
ମୁଁ ମନ୍ତ୍ରୀୟ ମଣ୍ଡଳକୁ ବାଟ ଦେଖାଇବା ଗୁଡ଼ପାରିଲି,
ବା ଭୁଲିପାରିଲି ମୁଁ ଅଗ୍ନି କଣୋଟିଏ ।

—※—

# ସାଥି ଲକ୍ଷ୍ମଣ ମହାପାତ୍ରଙ୍କ ହତ୍ୟାପରେ

ସୂର୍ଯ୍ୟ ଏବଂ ଚନ୍ଦ୍ରଙ୍କୁ ଯେଉଁମାନେ ଈର୍ଷା କରନ୍ତି
ସେଇ ଅନ୍ଧାରର ସୁତମାନେ
ତମକୁ କେମିତି ସହି ପାରନ୍ତେ ?
ଭୁବନେଶ୍ୱରର ବଣ୍ୟ ବାତାବରଣର
ରକ୍ତମୁଖା ଡ୍ରାଗନ ମାନଙ୍କର
କ୍ରୋଧ ତମକୁ ଗୋଡ଼ାଉଥିଲା
ଅନେକ ଦିନରୁ ।
ଯେଉଁଠି ମଣିଷର ଲୁହବୁନ୍ଦା ଝରୁଥିଲା
ଦୁଃଖର ପଡ଼ିଆ ଦିଗନ୍ତକୁ ଲମ୍ବି ଯାଉଥିଲା
ତମେ ଠିଆ ହୋଇଥିଲ ବଜ୍ରଧର ଭଳି ।
ତମ ଆଖିର ଆଲୁଅରେ
ତମ କଣ୍ଠର ବଜ୍ର ଆବାଜରେ
ଫଣାଟେକା ବିଷଧର ମାନେ ଗର୍ତ୍ତ ଭିତରକୁ ପଶିଯାଉଥିଲେ,
ରକ୍ତମୁହାଁ ଜୋକମାନେ ପୋଖରୀ ଭିତରେ ଲୁଚି ଯାଉଥିଲେ ।
ଋଷିକୁଲ୍ୟାର ପାଣିଜଳ ପ୍ରସ୍ରୁତ
ପ୍ରସ୍ରୁତ ସାଗରଫେଣ ଛତ୍ରପୁରର ସମୀର
ଗଞ୍ଜାମର ପାପ କିଏ ଲିଭାଇଦେଲା ?
ସାଥୀ ! ତମ ରକ୍ତ ଯେ ମାଟି ଶୋଷିଲା
ସେ ଆମର ଜେରୁଜେଲମ୍ ।
ଯେଉଁ ନେପଥ୍ୟ ଖଳ ନାୟକ ମାନେ
ତମ ରକ୍ତର ହାତ ଧୋଇସାରି
କଥାର ଲହୁଣୀ ମନ୍ଥୁଛନ୍ତି
ସେମାନେ ଛଡ଼ ଦାଗଭଳି
କଟକ, ଭୁବନେଶ୍ୱରରେ ମାଡ଼ି ଯାଇଛନ୍ତି ।
ଚରଣ ପଟ୍ଟନାୟକର ରକ୍ତଧାରା ଏଇ ବିଷାକ୍ତ କୀଟ ମାନଙ୍କୁ
ଇତିହାସ ଦିନେ ନର୍ଦ୍ଦମା ଭିତରକୁ ଫିଙ୍ଗିଦେବ ।

—※—

# ଅଗ୍ନିତନୟାକୁ

ବିଶ୍ୱବିଦ୍ୟାଳୟର ତିନ ଗାର
ଅର୍ଥ ଆଉ ଷ୍ଟାଟସ୍‌ର ପ୍ରକାଣ୍ଡ ପ୍ରକାଣ୍ଡ ପାଚେରୀ
ମେଘଛୁଆଁ ମହଲର ମୋଜାଇକ୍ ଓ ଫ୍ରେସ୍କୋ
ସମସ୍ତେ ତମକୁ ବାଟ ଓଗାଳି ଥିଲେ,
ଅଗ୍ନିଗ୍ନିବଳୟର ଲୁହ ଧୂଆ ଡାକରା
କାନରେ ପଡ଼ୁ ନ ପଡ଼ୁଣୁ
ତମେ ଖୁଣ୍ଟି ଉପାଡ଼ି ଦେଲ
ଆକାଶ ଭଳି ପ୍ରସରିଗଲ, ଧରଣୀ ଭଳି ସର୍ବଂସହା ହୋଇଗଲ ।

ଅତ୍ୟାଚାରର ଲୋମଶ କର୍କଶ ହାତ ତମକୁ ଛୁଣ୍ଟି ଦେଲ
କାଞ୍ଚଣ ସୌଧାଗାରର ମିଳନକକ୍ଷରେ ଅପେକ୍ଷାରତ ନେତାମାନେ
ତମ ଧାସରେ ଝାଉଁଳି ଗଲେ ।

'ଗାନ୍ଧୀ' 'ନେହେରୁ' ତିଳକଧାରୀ ଲୋକମାନେ
ଲାଲ ଲାଲ ଲୌହ ଶଳାକାରେ
ତମ ଜଙ୍ଘାକୁ ବିଦ୍ଧ କଲ ବେଳେ
ତମେ ଅଗ୍ନିସ୍ନାତା ସୀତାଙ୍କଠ ବି ସୁନ୍ଦର ଦିଶୁଥିଲ ।

ମଣିଷ ଏବଂ ଭଗବାନଙ୍କ ସହ ଯେଉଁମାନେ ବିଶ୍ୱାସଘାତକତା କରିଚନ୍ତି
ଇତିହାସ ସେମାନଙ୍କ ତାଲିକା ତିଆରି କରୁଚି,
ଆଜି ତମ ନାଁ କୁ ଆଦରରେ ବାରମ୍ବାର ମୁଖସ୍ଥ କରୁଚି,
କାରଣ ସାରା ବିଶ୍ୱରେ ଏ ଜାତିର ପରିଚୟ ଦାୟିତ୍ୱ
କେବଳ ତମ ଉପରେ ରହିଚି ।

—✪—

# ଶାସନର ଛାୟାତରେ

ମୋନାଲିସା, ଆସ, ମତେ ମିଠା ଚୁମାଦିଅ
ବୁଡିଯାଏ ମୁଁ ଅମୃତ ସାଗର ଭିତରେ ।
ଭୁଲିଯାଏ ଖବର କାଗଜ ପିଠିରେ ବସି
ଘୂରି ବୁଲୁଥିବା କ୍ରନ୍ଦନ ଓ ହାହାକାର ମାନଙ୍କୁ ।
ଲ୍ୟାମ୍‌ପୋଷ୍ଟ ଷ୍ଟାନପୁ ଶ୍ରୈଧ୍‌ସ୍ଥ, ରେଭେନ୍‌ସାଲ ଗ୍ରନ୍ଥ
ପ୍ରବନ୍ଧ ବକ୍ତା, ଦରଦୀ କବି
କୋରପୁଟ ଜଙ୍ଗଲକୁ ଲାଲ କଲା ଗୁଳିଖାଉ ।
ଫ୍ରେଞ୍ଚ୍ ନୋବେଲ୍, ସ୍ୟାମ୍ପେନ୍ ପିଇବା
ଏ ସ୍ୟାମ୍ପେନ୍ ଇଟାଲିର
ସୂର୍ଯ୍ୟ ସ୍ନାତ ବେଳା ଆଜି ଦ୍ରାକ୍ଷାକୁଞ୍ଜର ଗନ୍ଧ ଆଣିଛି ।
କାଶୀପୁରରେ ଅନାହାର ମୃତ୍ୟୁ ଘଟିଛି,
କନକାଟର ମୂଲିଆ ମାନଙ୍କ ନେତାମାନେ
ଗୁଣ୍ଡାମାଡରେ ମେଡ଼ିକାଲ୍‌ରେ ।
ମୋନାଲିସା, ମୁଁ ତମର ଦେହ ଲଜଂକୁ
ବ୍ଲକ୍ କରିଛି ଆଜି ଧନର ପାଇଁ,
କାରଣ ତମ ହସରେ ସ୍ନେହ ନାହିଁ
ଆଜି ତମ ସ୍ତନର ସ୍ପନ୍ଦନରେ
ନାବ ଗନ୍ଧକର ନିଶା ଜମିଆସେ ।
ମାର୍କିନ୍ ନେତାଙ୍କ ହାତରେ ମୁଁ ଧରାଇ ଦେଇଛି
ପାଞ୍ଚଲକ୍ଷ ଟଙ୍କାର ଚେକ୍ ।
କଣ୍ଟ୍ରାକ୍ଟ ବ୍ୟବସାୟରେ ଲାଭ ଏଥର
ସାତ ଅଙ୍କରେ ପହଞ୍ଚିଲାଣି ।
ଆମର ଏ ଅଶ୍ଳୀଳ ଅବାଧ ପାର୍ଥିବ ହେଉ
'ସମାଜବାଦ୍'ର ଛାୟାରେ

—✪

## ମନ କଥା

ସ୍ବରାଷ୍ଟ୍ରେ ଦେଶ ଭକ୍ତ ମହାନଙ୍କ ଶବ
ମୁଁ କେମିତି ରକ୍ଷଣ ମାରିବ ?
ଯେଉଁ ବ୍ୟାଧ ଶରାଘାତେ
ବଣ ହେଲା ଜୀବନଶୂନ୍ୟ
ତା ପାଦେ ମୁଁ ଶ୍ରଦ୍ଧାଂଜଳି କେମିତି ବା ଦେବି ?
ଏକୁଟିଆ ହେବାର ବେଦନା ମୁଁ ସହି ପାରିବି
କିନ୍ତୁ ହଜାର ଭିଡରେ ହଜି ଯିବାର ଯନ୍ତ୍ରଣା
ମତେ ଅଥୟ କରେ
ଭେଟିର ଥାଳି ସଜାଡ଼ି
ଦରବାରକୁ ଯାଉଥିବା ଲୋକଙ୍କ ଧାଡି
ଦିଗନ୍ତ ଛୁଇଁ ସାରିଲାଣି ।
ଆମ ପିଠିରେ ଶୀତଳ ଲହୁଣୀ ନଳ ଲୋଂଜ
ସେମାନେ ଆନନ୍ଦରେ ବଜାଉଛନ୍ତି
'ହେଁ ହେଁ କର' ।
ଆମ ପିଠିରେ ଗର୍ତ୍ତ ହେଲେ
ବନ୍ଧୁକ ଧାରୀ ମାନେ
ଜ୍ଞମାଳପୁରେ ଦାନ୍ତ ଚିପିଥିବା ଐରାବତ ଭଳି
ଅସହାୟ ହୋଇ ପଡ଼ିବେ ।



## ଆମ ନେତା, ତୁମ ନେତା,
## ସଭିଁଙ୍କ ନେତା

ଯୋଉ ନେତାଙ୍କି
ହାତ ହଲାଇ ଏ ସହରେ ସୁନ୍ଦର ସୁନ୍ଦର ଶବ୍ଦ ଜନ୍ମ କରୁଛି
ଗତ ହୋଇଗଲେ
ଶ୍ବେତ ବଣିକଠୁ ଆଦରର ଚୁମା ଖାଉଛି ।



# ଅଜ୍ଞାତ ବାସର ଅନ୍ତିମ ଦିନ

ସ୍ୱର୍ଗର ଅମୃତପୂର୍ଣ୍ଣର ମଦିରା ପିଇ
ଆମେ ନାଚିଲୁ, ଜାଗ୍ରତ ବିପ୍ଳବ କଲୁ
ମୃତ୍ୟୁ ନେତାଜୀଙ୍କର ଉପଦେଶ ହୃଦୟରେ ଧାରଣଥିବା
ଆଧୁନିକ ଜଗତଙ୍କୁ ଶିକ୍ଷାଦାନ କଲୁ
ବହୁ ବର୍ଷ ଇଂରେଜ ରାଜ କଷ୍ଟ ନେତାଙ୍କୁ ଅବମାନିତ କଲୁ,
ଦିଲ୍ଲୀ ଦ୍ୱାରାରଙ୍କୁ ଆସି ଭେଟିଲୁ
ନେତାଜୀଙ୍କ ବଂଶର ବାଳକ ହିଁଏ
ବର୍ତ୍ତମାନର ତ୍ରୁଟି ହିଁ କ୍ଷୁଦ୍ର ନେତାଜୀଙ୍କୁ,
ଆମର ଆକାଶ ସ୍ପର୍ଶୀ ହିନ୍ଦୁ ଦେଶ ସ୍ୱତନ୍ତ୍ର ସ୍ୱର ଜାଗିଲା ।

— 卐 —

# ରୂପାନ୍ତର

ହେ ବନ୍ଧ୍ୟ ଧରିତ୍ରୀ ଜନନୀ ଗୋ!
ବହୁ ବର୍ଷ ତଳେ ତମ ସନ୍ତାନ ହଜିଲେ
ଆଜି ଯୌବନବେଳେ ଦେଖାଯାଏ
ତମ ବନ୍ଧ୍ୟା ଗର୍ଭର ଧାରିଣୀ ।
ନବୀନ ନିକୁଞ୍ଜର ଶ୍ୟାମଳ ସ୍ରୋତରେ
ମଧୁର ଦ୍ରାକ୍ଷାରସ ପାନ କରିବାକୁ
ତମେ ଆଉ ପ୍ରସ୍ତୁତ ନୁହଁ ।
ଆଜି ଚଣ୍ଡୀ ମୂର୍ତ୍ତିର ନବବଧୂ ଆଲିଙ୍ଗନରେ
ମହାନ ଜାଗର ଗର୍ଭ!
ରକ୍ତବୀର୍ଯ୍ୟର ବାସ୍ନାଦ ବାଜିରେ
ସର୍ବଂସହା ଧରଣୀ ଥରହର ।
ଜନନୀ ଗୋ, ତମ ରକ୍ତରଞ୍ଜିତ ଅଶ୍ରୁ ନୟନରେ
ବହ୍ନିଶିଖା ଲମ୍ଫ ଦେଉଛି,
ଆଉ ତମ ସ୍ଖଳିତ ଦେହର ସ୍ପର୍ଶରେ
ଅଭିଶାପର ଝରଣା ମୁକୁଳି ଯାଉଛି ।

—✪—

# ଦୁଇ ଭାରତ

ଦୁଇଟି ଭାରତ
ଗୋଟିଏ ଭାରତ ଇଂରାଜୀ କହେ
ଫାଇଭ୍ ଷ୍ଟାର୍, କ୍ଲବ୍, କ୍ୟାବାରେରେ ଘୂରେ
କୋଟ ଟୋପେ, ମାର୍କେଟ୍ ଟେକେ, ଉଡାଜାହାଜ ଚଢେ ।

ଆଉ ଏକ ଭାରତ
ପାଣି ପାଇଁ ମାଇଲ ମାଇଲ ଯାଏ
କୁଡ଼ିଆରେ ରହେ,
ଜମାଘରେ ଦାନ କହାଇ ଦିଏ ।

ଗୋଟିଏ ଭାରତ ସ୍ୱପ୍ନ ଦେଖେ ନ୍ୟୁୟର୍କ ଓ ପ୍ୟାରିସ୍‌ର
ପ୍ରାଚୁର୍ଯ୍ୟ ଓ ବିଳାସର
ଏ ଭାରତ ଶ୍ୟାମ୍ପେନ ପିଏ, ଫ୍ରି-ସେକ୍ସ ବୁଝେ ।
ଫ୍ରିଜ୍ ଖୋଲେ, ଟେଲିଭିଜନ୍ ଦେଖେ, ମଦର ଗଢ଼େ, ବ୍ଲାକ୍ ମନି ଲେଣ୍ଡେ

ଆଉ ଭାରତ ଯୌବନରେ ବୁଢ଼ା ହୁଏ ଖଟି ଖଟି
ଶିକ୍ଷାପାଇଁ ସୁଯୋଗ ପାଏନା,
ଔଷଧ ଟୋପାଏ ଖାନା ଝରିପଡ଼େ ମାଟିର ଉପରେ ।

ଗୋଟିଏ ଭାରତ ଗାଏ ଏସିଆଡ୍‌ର ଜୟଗାନ,
ଆଉ ଭାରତଟି ସ୍ୱପ୍ନ ଦେଖେ ମନେ ପେଜ ଓ
ଅଞ୍ଜଳାଏ ଶୀତଳ ଜଳର ।

—※—

## ଭୂମି ଅବତରଣ

ଯେତେଦିନ ପର୍ଯ୍ୟନ୍ତ ମୁଁ ମାର୍କ୍ସ,ଲେନିନ୍ ଗାନ୍ଧୀଙ୍କୁ ନେଇ,
ଯୁକ୍ତିର ଧୂଳି ଉଡ଼ାଇ ଥିଲି, ବନ୍ଧୁମାନେ କହୁଥିଲେ
'କି ଚମତ୍କାର ଆଇଡ଼ିଆ !'

ମୋ କଲମ ଯେତେବେଳେ
ଅଗ୍ନିଫୁଲ ବର୍ଷୁଥିଲା,
ମୋତେ ପୁରସ୍କାର ଦେବାପାଇଁ
ଏକାଡ଼େମୀର ଦ୍ୱାର ଖୋଲାଥିଲା ।

ଆଜି ମୁଁ ନାଳିଆ ଧୂଳିର ପୋଷାକ ପିନ୍ଧିଛି
କନ୍ଧ ଗାଁରେ ପେଜ ଖାଉଛି,
ବନ୍ଧୁମାନେ କହୁଛନ୍ତି, ମୁଁ ପାଗଳ ହୋଇ ଯାଇଛି ।

—※—

## ରାଜନୀତିଜ୍ଞ ମାନେ

ସତ ଆଜି ମିଛ ମଧ୍ୟରେ
ଭଗବାନ ଆଜି ସୟତାନ୍ ମଧ୍ୟରେ
ଯେଉଁ ପାଚେରୀଟି ଥିଲା, ସେମାନେ ଉଠାଇ ଦେଲେ
ତେଣୁ ସେମାନଙ୍କର
ମିଠା ହସର ଝାମଭିତରେ ରକ୍ତ ମୁଖା ଛୁରୀ ଝୁଲାଇ ପଡ଼ୁଛି
ସୁନ୍ଦର ମୁଖର ପର୍ଦା ଉହାଡ଼ର ବଇସ୍ତ୍ର ଡାହାଣୀ ଗୁଣି ଗାରେଡ଼ି କରୁଛି

—卐—

ସାହସ୍ କରିବ କିଏ ? କାହାସହ ? କେଉଁ ଲକ୍ଷ୍ୟ ପାଇଁ !
ମୋ ଚତୁର୍ଦ୍ଦିଗରେ ଉଗ୍ର ଜଲ୍ଲାଦର ଦଳ
ଛିନ୍ନ ଭିନ୍ନ ମୁଣ୍ଡ ଗଣ୍ଡି କୋଳାହଳ ବଢ଼େ,
ଲୁହଆରୁ ନିଆଁ ଜଳେ, ଖପର ଓ ଫାଶିରେ ବାଟ ମିଳୁ ନାହିଁ ।

ସାହସର ଅର୍ଥ ଆତ୍ମ ସମର୍ପଣ, ବ୍ୟକ୍ତିତ୍ୱ ବିଲୟ
ଶତ ସନ୍ତାନଙ୍କୁ ଗର୍ଭେ ସ୍ଥାନ ଦେଇ ଶେଷ ହୋଇଯିବା,
ମାତା ପିତାଙ୍କୁ ଯେ ଦେଲା ଛୁରି ଭୁଷି, ଗୃହ କଲା ଜର
ତା' ପଦେ ପ୍ରଣତି ବାଢ଼ି ଏକ ହୀନ ଜୀବନ ବଞ୍ଚିବା ।

କାରାଗାର ଦ୍ୱାର ଖୋଲେ ମୁଣ୍ଡମଳର ଝଣ୍ଡା ଥିଆ ହୁଏ,
ଲାଲ୍ ଆଖି କ୍ରୋଧେ ଘୂରେ, ଦେହ ବେଗେ ପ୍ରଚଣ୍ଡ ପ୍ରହାର,
ତଥାପି ନଇଁବ ନାହିଁ, ଆଣୁ ମୋର ବଙ୍କା ହେବ ନାହିଁ
ବପୁ ଯଦି ଜଳିଯାଏ, ବୃଥା ହେବ ସତ୍ୟର ମୂର୍ଦ୍ଧାର ।

ଲଢ଼ୁଛି ମୁଁ ବୋଲି କହେ ଗୋପପୁରେ କଂସାସୁର ଅରି
ଅରୁଣୋଦୟର ବାର୍ତ୍ତା ଭାସି ଆସେ ପୂର୍ବ ଦିଗନ୍ତରୁ
ମୁମୂର୍ଷୁ ଓଠରେ ଜଳେ ଦିକ ଦିକ ଆଶାର ଆଲୁଅ
ନୂଆଯୁଗ ପବନରେ ଭାସିଯାଏ ମଧୁର ସୁଗନ୍ଧ ।

—※—

# ଶେଷ କବିତା

କ୍ଷମା କରିବ,
ମୁଁ ତମର ବାର୍ଷିକୋତ୍ସବକୁ ଆସିବି ନାହିଁ,
ଯେଉଁ ଧଳା ଡ଼କାୟତ ଦଳ ଲୁଟ୍‌ତରାଜରେ ରେକର୍ଡ ଭାଙ୍ଗିଚନ୍ତି
ତମେ ତାଙ୍କର ଭିତରୁ ଜଣକୁ ମୁଖ୍ୟ ଅତିଥି କରିଚ ।

ଚମ୍ବଲ ଡକାୟତଙ୍କ କୌଳିନ୍ୟ ଏଇ ନେତାମାନଙ୍କର ନାହିଁ
ସେମାନେ ଗାନ୍ଧୀ ଜେ. ପି. ଙ୍କୁ ବଜାର ମକଡ଼ଧେ
ଥୋଇ ମୂଲ କରୁଚନ୍ତି,
ଆଜ ମନ୍ଥର ଶକୁନକୁ ରେସ୍‌ରେ ହରାଇ ଦେଇଚନ୍ତି ।

ସହରର ସ୍ବଳଣ ହଜାରରେ ମୁଁ ଯଦି ଏକା କୁଣ ବନ୍ଦନ କରେ
ଦୁଃଖ କାହିଁକି କରିବ ?
ଆମ ବଂଶର ଲୋକେ କୋଉ ଯୁଗରେ ବେଶୀଗୁଡ଼େ ଥିଲେ ଯେ ?
ମୋ ପାଟି ବନ୍ଦ କରିବା ପାଇଁ
କେବେ ପୋଲିସ୍‌ର ବାୟୋନେଟ୍ କମ୍ବା
ଗୁଣ୍ଡାଙ୍କ ଛୁରି ଚକ୍ ଚକ୍ କରିବ
ମୁଁ ସେଦିନକୁ ଅପେକ୍ଷା କରିଚି ।

—卐—

# Mo Desh Nuhen Bhubaneswar

BY

BHAGABAT PRASAD RATH

I exist as I am, that is enough / If no other in the world be aware I sit content / and if each and all be aware I sit content'

Walt Whitman

Printed by Gangadhar Das at Janata Press, Rayagada, Koraput

# Mo Desh Nuhen Bhubaneswar

BY

BHAGABAT PRASAD RATH,

" I exist as I am, that is enough / If no other in the world be aware I sit content / and if each and all be aware I sit content'

Walt Whitman

Printed by Gangadhar Das at Janata Press, Rayagada, Koraput